# ଶ୍ରୀ ବାଟେଶ୍ୱର

# ମହାପ୍ରଭୁଙ୍କ ସ୍ତୁତି



ଶ୍ରୀ ଜୟଦେବ ଠାକୁର, ଜମିଦାର
ଏଚ୍. ଏମ୍. ବି

ଠାକୁର ନିକ୍ତପାଳ
କୋଚଣ୍ଡା, ବାମଣ୍ଡା
ତା ୬ । ୩ । ୧୯୫୧

ଦୁଇଅଣା ମାତ୍ର ମୂଲ୍ୟ ଟ ୦୵

ପରୋପକାରାୟ ସତାଂ ବିଭୂତୟଃ

# ଉତ୍ସର୍ଗ ପତ୍ର

---

ବଡଖେମୁଣ୍ଡି ଦୁର୍ଗ ରାଜକୁଳଶିରୋମଣି,

ଗୁଣଗ୍ରାହୀ, ତାପିତ-ହୃଦୟ-ଚନ୍ଦନ

**ଶ୍ରୀମାନ୍ ଶ୍ରୀ କଦମ୍ବକେଶରୀ ଚନ୍ଦ୍ର ଦେଓଙ୍କ**

କରକମଳରେ ଏହି କ୍ଷୁଦ୍ର ପୁସ୍ତିକାଟି

ଜନସାଧାରଣଙ୍କ ଉପକାରାର୍ଥ ଭକ୍ତ୍ୟୁପହାରସ୍ୱରୂପ

ଉତ୍ସର୍ଗ କଲି । ଇତି ।

---

ତା ୬ । ୩ । ୧୯୫୧

**ଲେଖକ**

# ଭୂମିକା

ବହୁଦିନ ପୂର୍ବରୁ ବଣାଇ ଅନ୍ତର୍ଗତ ଦେଓଗାଁର ଶ୍ରୀ ବାଣେଶ୍ୱର ଦେବ ଓ ପାର୍ବତୀ ଯୁଗଳମୂର୍ତ୍ତିଙ୍କ ମହିମା ଅନେକ ଲୋକମୁଖରୁ ବହୁବାର ଶୁଣି ତାଙ୍କର ଦର୍ଶନ ଲିପ୍‌ସା ମୋ ହୃଦୟରେ ଜାଗରିତ ହୋଇଥିଲା । ସୁଯୋଗ ଓ ସୁବିଧା ପାଇ ଗତ ୧୯୮୯ ମସିହା ଶିବରାତ୍ରିଦିନ ଉକ୍ତ ମହାଦେବଙ୍କ ଦର୍ଶନ ପାଇଁ ଯାଇଥିଲି । କିମ୍ବଦନ୍ତୀରୁ ଶୁଣିପାରିଲି ଯେ ପୂର୍ବେ ବାଣାସୁର ସେଠାରେ ରାଜତ୍ୱ କରୁଥିଲେ । ତେଣୁ ବଣାଇର ଅନ୍ୟ ନାମ "ବାଣଦୁର୍ଗ" । ପ୍ରୋକ୍ତ ବାଣାସୁର ଅତିଶୟ ଶିବଭକ୍ତ ଥିଲେ, ତେଣୁ ସେ ପ୍ରତ୍ୟକ୍ଷ ଦର୍ଶନପାଇଁ ଶିବପାର୍ବତୀଙ୍କ ଯୁଗଳମୂର୍ତ୍ତି ସ୍ଥାପନ କରି ନିଜ ନାମାନୁସାରେ ଆଖ୍ୟା ଦେଇଛନ୍ତି । ପ୍ରବାଦ ଅଛି, ଏହି ମହାଦେବ ବାଣାସୁରଙ୍କୁ ସେଠାରେ ମନ୍ଦିର ନିର୍ମାଣ କରାଇବାପାଇଁ ସ୍ୱପ୍ନାଦେଶ ଦେଇଥିଲେ । ତେଣୁ ସେ ଏହି ମନ୍ଦିର ନିର୍ମାଣକରି ଶିବ-ଭକ୍ତିର ପରାକାଷ୍ଠା ସମ୍ପାଦନ କରି ଅଭିଶାପ ଦେଇଯାଇଅଛନ୍ତି ଯେ "ଯେଉଁ ବ୍ୟକ୍ତି ଏହି ମନ୍ଦିରକୁ ପାପଦୃଷ୍ଟିରେ ଦେଖିବ ସେ ବାଣବିଦ୍ଧ ହେବ ଓ କୁମ୍ଭୀପାକ ନର୍କରେ ପଡ଼ିବ" ।

ଆଧୁନିକଯୁଗରେ ଏହି ବେଦବିଦ୍ୟାନ୍ୱିତ ଶିବଭକ୍ତି ବା ଈଶ୍ୱରଭକ୍ତି କାହାର ହୃଦୟ ସ୍ପର୍ଶ କରୁନାହିଁ । କାରଣ ଜନସମାଜ ନାନାବିଧ ବିଳାସବ୍ୟସନ ଓ ନାସ୍ତିକତାବାଦରେ ଅସ୍ତିକ ହେଉଥିବାରୁ ସେମାନଙ୍କ ଧ୍ୟାନ, ଧାରଣା କ୍ରମଶଃ ବିଲୁପ୍ତ ହୋଇ ଏହିସବୁ ଦେବଦେବୀଙ୍କ ଭକ୍ତିରେ ପ୍ରବୃତ୍ତ ହେଉନାହିଁ ଏବଂ ବାହ୍ୟ ଜଗତରେ ଆଡ଼ମ୍ବର ଦେଖାଇବାପାଇଁ ତାତ୍ତ୍ୱିକଜ୍ଞାନର ଦୋହାଇ ଦେଇ ସମସ୍ତେ ଏକାକାର ଓ ଏକଧର୍ମାବଲମ୍ବୀ ଭାବରେ ନିଜନିଜର ଧାର୍ମିକତା ମାତ୍ର ପ୍ରକାଶ କରୁଅଛନ୍ତି । ଏଥିପାଇଁ ମହାତ୍ମା ଜଗନ୍ନାଥ

ହାଣ ନଜର ଅଦ୍ଭୁତ ଦୃଷ୍ଟିବଳରେ ଏହି ଅଦ୍ଭୁତ ଘଟଣା ଲକ୍ଷ୍ୟ କରି ସ୍ୱରଚନ ଭାଗବତରେହିଁ ଲେଖିଯାଇଛନ୍ତି—

"ସର୍ବେ ହୋଇବେ ଏକାକାର ।
ନଥିବ ବେଦର ବିଗ୍ଭର ।"

ତଥାପି ଏହି ବୈଦିକ ଧର୍ମର ଏପରି ଗୋଟିଏ ଅଦ୍ଭୁତ ଶକ୍ତି ଅଛି ଯାହାକି ଏହିପରି ସହସ୍ରାଧିକ ଝଞ୍ଜାବାତ ନାନା ସମୟରେ ଘଟିଥିଲେ ମଧ୍ୟ ତାହାର ନୈତିକତା ପ୍ରଭାବରେ ସେ ସର୍ବଦା ଅକ୍ଷୁଣ୍ଣ ହୋଇ ରହିଆସିଅଛି । ଏଣୁ ଏହି ନାସ୍ତିକତା ନରପିଶାଚଙ୍କ ଲକ୍ଷ୍ୟରେ ସ୍ଥାନେ ସ୍ଥାନେ ଜ୍ୱଳନ୍ତ ଉଦାହରଣ ଦେଖାଯାଉଅଛି—

ମାତୃ ହରଣ ସୁରାପାନ
ଏ ବେନି ଅଟଇ ସମାନ ।
ତେଣୁ ହୋଇବେ ଅଳ୍ପାୟୁଷ
ପାପେ ସକଳେ ଯିବେ ନାଶ ।

ଅତଏବ ମୋ ମତରେ ଏହି ବୈଦିକ ଧର୍ମ ଚିରନ୍ତନ ଭାବରେ ସନାତନ ଆଖ୍ୟାନେଇ ଅବହମାନକାଳରୁ ରହିଆସିଅଛି । ଏଣୁ ଏହାର ଧ୍ୱଂସ କଦାପି ସମ୍ଭବ ନୁହେ ।

ଯେଦିନ ଚନ୍ଦ୍ର ସୂର୍ଯ୍ୟ ଗର୍ଭେ
ଗ୍ରହଣ ପର୍ବ ଲାଗିବ ।
ସେଦିନ ବେଦର ବଚନ
ହେବକି ମିଥ୍ୟା ହେବ ଜାଣ ।

ପୁଣି ଏହି ଧର୍ମର ରକ୍ଷାଲାଗି ଭଗବାନ ଶ୍ରୀକୃଷ୍ଣ ନିଜର ଉପଦେଶ-ଭରା ଗୀତାରେ କହିଛନ୍ତି—

"ଯଦା ଯଦାହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍" ।

ଏଥିରୁ ସ୍ପଷ୍ଟ ଜଣାଯାଉଅଛି ଯେ ଈଶ୍ୱରଙ୍କ ଲୀଳା ଅସୀମ ଓ ଅଜ୍ଞେୟ । ଏହା ସାଧାରଣ ମାନବର ଦୁର୍ବୋଧ ଏହା ସୁନିଶ୍ଚିତ । ଯଦି ସର୍ବପ୍ରଭୁ ପରମେଶ୍ୱର ନିଜର କଥିତାନୁସାରେ ଅବତୀର୍ଣ୍ଣ ହୋଇ ଏହି ଧର୍ମର ଅସ୍ତିତ୍ୱ ରଖିଯିବେ ତେବେ ଏହା ଚିରନ୍ତନ ରହିବା ସମ୍ଭବ ନଚେତ୍ ତାହାଙ୍କ ଇଚ୍ଛାଶକ୍ତି ଉପରେ ନିର୍ଭର କରେ । ମୁଁ ଜଣେ ଦରପାଠୁଆ କ୍ଷୁଦ୍ରମତି ମନୁଷ୍ୟ । ଏ ବିଷୟର ସମାଲୋଚନା ମୋ ଜ୍ଞାନସୀମାର ବହିର୍ଭୂତ ; ତେଣୁ ଏ ସମ୍ବନ୍ଧେ ଯାହା କି ଲେଖନୀ ଚାଳନ କରି ଚପଳତା ଦେଖାଇଅଛି ତାହା ସୁଧୀବର୍ଗ ନିଜ ନିଜର ଉଦାରତା ଗୁଣରେ କ୍ଷମା ଦେବେ ।

“ଶ୍ରୀ ବାଣେଶ୍ୱର ମହାପ୍ରଭୁଙ୍କ ସ୍ତୁତି” କବିତାଟି ଚୋଖି, ବସନ୍ତ ଓ କାମୋଦୀ ବୃତ୍ତରେ ଲେଖିଅଛି । ଏଥିରେ ଅଧିକାଂଶ ଦ୍ୱିରୁକ୍ତି ଦୋଷ ପରିଲକ୍ଷିତ ହେଉଥିଲେହେଁ ଉକ୍ତ କବିତାଟି ଅକ୍ଷର-ବିନ୍ୟାସରେ ( କ — କ୍ଷ ) ଲେଖାଯାଇଥିବାରୁ ସ୍ଥାନେ ସ୍ଥାନେ ଏପରି ଦ୍ୱିରୁକ୍ତି ରହିବା ସ୍ୱାଭାବିକ, କିନ୍ତୁ ଏହା ଦୋଷାବହ ନୁହେଁ । ବିଶେଷତଃ ଜଣାଣ ଓ ସ୍ତୁତିପାଠରେ ଏହାକୁ ଭ୍ରମ ବୋଲି ସୁଧୀବର୍ଗ ସ୍ୱୀକାର କରିନାହାନ୍ତି ।

ଅବଶ୍ୟ ମନୁଷ୍ୟର ପ୍ରତାଛରେ ପ୍ରାୟ ସ୍ଖଳନ ଘଟିଥାଏ । ସେହିପରି ମୋ ଲେଖାରେ ଦୋଷ ଥିବା ସମ୍ଭବ । ଏଣୁ ସେ ସମସ୍ତ ଦୋଷପ୍ରତି ଦୃଷ୍ଟି ନ ଦେଇ ଶ୍ରୀ ବାଣେଶ୍ୱର ମହାପ୍ରଭୁଙ୍କ ମହିମା ଉପରେ ଦୃଷ୍ଟି ଦେଇ ସୁଧୀବର୍ଗ ବା ପାଠକବର୍ଗ ମୋତେ ଆପ୍ୟାୟିତ କରିବେ । ଇତି ।

ବିନୀତ

**ଲେଖକ**

# ପ୍ରଶଂସା ପତ୍ର

ଜମିଦାର ଶ୍ରୀ ଜୟଦେବ ଠାକୁରଙ୍କ ରଚିତ "ଶ୍ରୀ ବାଣେଶ୍ୱର ମହାପ୍ରଭୁଙ୍କ ସ୍ତୁତି" ଦେଖି ପରମ ପ୍ରୀତି ଲାଭକଲି । ଏହି କବିତାଟି ଯେପରି ଭକ୍ତିରସରେ ପୂର୍ଣ୍ଣ ତଥା ଭାବଗର୍ଭକ ଓ ସୁଲଳିତ ପଦାବଳୀରେ ବିନ୍ୟସ୍ତ ହୋଇଅଛି ସେପରି ଏହି ରଚନାରେ ସ୍ଥାନେ ସ୍ଥାନେ ଅନୁପ୍ରାସାଲଙ୍କାର ମଧ୍ୟ ପରିଲକ୍ଷିତ ହେଉଅଛି । କବି ସାମାନ୍ୟ ଭାଷାଜ୍ଞାନସମ୍ପନ୍ନ ବ୍ୟକ୍ତି ହେଲେହେଁ ବହୁ ଶାସ୍ତ୍ରାଲୋଚନା କରି ସାବଧାନ ପୂର୍ବକ ଦ—କ୍ଷ ଅକ୍ଷର କ୍ରମେ ପଦସମୂହର ଯୋଜନା କରିଥିବାରୁ କବିତାଟି ଲୋକଦୃଷ୍ଟିର ଆକର୍ଷଣରେ ଅତ୍ୟନ୍ତ ଉପଯୋଗୀ ହୋଇଅଛି ।

ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଉନ୍ନତି କଲେ ଯେଉଁ ଉପାୟମାନ ଆର୍ଯ୍ୟଋଷିମାନେ ସମ୍ବିଧାନ କରିଅଛନ୍ତି ତହିଁପ୍ରତି ଯଥାବିଧି ଦୃଷ୍ଟିପାତ ହେଉନଥିବାରୁ ଜୀବନରେ ନାନାଦି ବାଧାବିଘ୍ନ ଉପସ୍ଥିତ ହୁଏ । ତେଣୁ ଶାସ୍ତ୍ରାନୁମୋଦିତ କାର୍ଯ୍ୟକଳାପ ପ୍ରତି ସଂସାରର ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ଜମିଦାର ମହାଶୟ ଜନସାଧାରଣଙ୍କର ଭକ୍ତି ଓ ବିଶ୍ୱାସ ବୃଦ୍ଧିପାଇଁ ଏହି କବିତାର ଲେଖି ସାଫଲ୍ୟମଣ୍ଡିତ ହୋଇଛନ୍ତି ଏବଂ ଏହି କବିତାର ସଂଶୋଧନ ଭାର ମୋତେ ଅର୍ପଣ କରିଥିବାରୁ ମୁଁ ଅନ୍ତରର ସହିତ ଧନ୍ୟବାଦ ଓ କୃତଜ୍ଞତା ପ୍ରକାଶ କରୁଅଛି ।

ମୋର ସମ୍ପୂର୍ଣ୍ଣ ବିଶ୍ୱାସ ଏହି ଜଣାଣ ଦ୍ୱାରା ଲୋକଙ୍କର ଆସ୍ତିକ୍ୟ-ବୁଦ୍ଧି ଉତ୍ପନ୍ନ ହେବ ଏବଂ ଶ୍ରୀ ବାଣେଶ୍ୱର ମହାପ୍ରଭୁଙ୍କ ପଦାରବିନ୍ଦରେ ଅଟଳ ଭକ୍ତି ରଖି ଜନସାଧାରଣ ଶୁଦ୍ଧପୂତ ଆର୍ଯ୍ୟଜୀବନ ଯାପନ କରି ଚରିତାର୍ଥ ହେବେ ।

କୋଦଣ୍ଡା
୨୮ । ୭ । ୧୯୫୦

ଶ୍ରୀବତ୍ସ ରାଜଗୁରୁ, ସାହିତ୍ୟାଚାର୍ଯ୍ୟ
କୋଦଣ୍ଡା ହା. ଇଃ ସ୍କୁଲ ହେଡ୍‌ପଣ୍ଡିତ

# ବାଣେଶ୍ୱର ମହାପ୍ରଭୁଙ୍କ ସ୍ତୁତି

( ଘଗ—ବ୍ଲେଞ୍ଝି )

କାମନା କର ପୂରଣ    କାତ୍ୟାୟନୀଙ୍କ ରମଣ
କରୁଅଛୁ ଯୁଗଳ ଚରଣେ ବନ୍ଦନ,
କାଶୀକଇଳାସପତି    କମଳ ପଦେ ବିନତି
କରଦେଲା ଭକତି ଗନ୍ଧୁଣ ଚନ୍ଦନ ;
କି ଦେଇ ତୋଷିବି ଚରଣ
କେବଳ ମୁକତି ପାଇଁ ଗଲି ଶରଣ ।

( ୨ )

ଖଟ୍ୱାଙ୍ଗଧର ମହେଶ    ଖଣ୍ଡ ଅଜ୍ଞାନ ତାମସ
ଖଳ ମୋହ ଆଶୀବିଷ କରେ ଅବଶ,
ଖଙ୍କ ନୁହେ ଭବ ଜାଲ    ଉଦ୍ଧର ହେ ଆଦିମୂଳ
ଖେଳାଅ ଧରା ଅମ୍ବର ପାତାଳ ଯଶ ;
ଖର କାଳଦଣ୍ଡ ପ୍ରହାର
ଖରେ ନିବାର ସ୍ନେହରେ ରଖ ଶଙ୍କର ।

( ୩ )

ଗୁହାରି ଯେବେ ନ ଶୁଣ    ଗଲେ ଛୁଟି କର ଦାନ
ଗରବଗଞ୍ଜନବାନା ହେଉ ଅମାଣ,
ଗିର୍ବାଣ ଗଞ୍ଜି ତାମସ    ଗରଳ ଗ୍ରାସି ହବସ
ଗିରିଜାରମଣ ହର ବହ୍ମ ପ୍ରମାଣ ;
ଗରଳ ତ ଶୋଭଇ ଗଳେ
ଗୁହାରି ଶୁଣ ବିରାଜ ହୃଦସ୍ଥ-ସ୍ଥଳେ ।

( ୪ )

ଘୋଡ଼ାଇ ରଥ ଘଣ୍ଟରେ ଯେନ ବନୟୁ ବଧ୍ୱରେ
ଘଡ଼ଡ଼ାଇ ଦଥ ଅଛ ବଳ ଗୋସାଇଁ,
ଘେଉ ଅସିଲେଣି ମାଡ଼ି ଘୋର ବନ ଗିଲା ତାଡ଼ି
ଘୋଟି ଗଲାଣି ଅନ୍ଧାର ଆକାଶ ଭୂଇଁ;
ଘଷି ପଦ ଚନ୍ଦନ ଥରେ
ଘୋଟେ ସ୍ନେହ ଦାସ ଶିଳା ଉକତ ଗିରେ ।

( ୫ )

ଉଆସ କର ହୃଦରେ ଉଠି ରେତ ଧାଈକାରେ
ଉଆଁଷ ତାମସ ହର ଦଗ ଅମ୍ବର,
ଉମାନାଥ ସ୍ନେହଭରେ ଉଦୟ ହୁଅ ହୃଦରେ
ଉଡ଼ାଅ କାରଣ ବାନା ଛନ ସଂସାର;
ଉପାୟ ନାହିଁ ତବ ବନା
ଉଣା ନ କର ହେ ଦୟାସିନ୍ଧୁ କରୁଣା ।

( ୬ )

ଚଉର ଦଶ ଭୁବନ ଚରଣ ତବ ବନ୍ଦନ
କରେ ଦୃଷ୍ଟି ଦଅ ତାରେ ପୁର ଶାସନ,
ଗୃହିଁ ଦର୍ଶନେ ଥରେ ସ୍ନାନ ଦେଇ ଚରଣରେ
ଗୁର ବେନ ଅର ନାଶ ଗଲ ଶରଣ;
ଚରଣ ବିଭୂତି ବୋଳାଇ
ଚିନ୍ତା ଛେଦ ଚିନ୍ତାମଣି ଚେତନା ଦେଇ ।

( ୭ )

ଛାଡ଼ ନାହିଁ ପଦ-ଦାସ ଛିଣ୍ଡାଇ ସେନେହ ପାଶ
ଛଳ ନ ରହ ମହେଶ ମାନସ ତୋଷ,
ଛେଦ ଶୂଳେ ତାପ ତୋର ଛଟେ ଶ୍ମଶାନ ହୁତାଶ
ଛାର ପଦ ଅପରାଧୀ ନ ଧର ଦୋଷ ;

ଶ୍ରୀମୂର୍ତ୍ତିର ଏତିକ ଗୁହାରି
ଛନ୍ଦି ପଦେ ରଖ ବାନ୍ଧ ଉମାବହାଙ୍କ ।

( ୮ )

ଜଟାଧର ଶିରଇନ୍ଦୁ          ଜଗତ ଭକତବନ୍ଧୁ
ଜାଣି ଯୁଗଳ ଚରଣେ ଗଲି ଶରଣ,
ଜଗବନ୍ଧୁ ଜଗନ୍ନାଥ          ଜଗଦମ୍ବା ଦେବୀକାନ୍ତ
ଜୀବନ ମରଣେ ଦିଅ ମୁକତି ଦାନ;
ଜାଣିଣ ତୋ ପଦ ମୁକତି
ଜପୀ, ତପୀ, ଜପି, ଗୋପୀ ପାଇଲେ ତାହି ।

( ୯ )

ଝାଡ଼ ସୁରେଶ୍ୱରୀ ନୀର          ଝଡ଼ ମୋ ବିପତ୍ତି ହର
ଝଟିତି ସୁଦୟା କର ପାର୍ବତୀବର,
ଝଷକେତନ ମର୍ଦ୍ଦନ          ଝାଡ଼ ମୋ ହର ବନ୍ଧନ
ଝାଞ୍ଜିରେ ଝଲସିଲୁଣି ହୋଇ ଅସ୍ଥିର;
ଝିମିଟେ ନ ପାରଇଁ ସହି
ଝାସିବ ଅନଳେ ଦେହ ରହିବ ମହୀ ।

( ୧୦ )

ଇନ୍ଦୁରବାହନ ତାତ          ଈଶାନ ହର ଅଭୂତ
ଈଶ ତବ ବିନା ନାହିଁ ମୁକତି ପଥ,
ଇଭ ଅରି ଧ୍ୱଜାକାନ୍ତ          ଇହ ନାଶସି ଜଗତ
ଇନ୍ଦୀବର ପଦ ଭେଜ କଲି ଆଶ୍ରିତ;
ଇନ୍ଦୁଭୂତ କର ତାରଣ
ଈଶ ତୋ ବିନା କେ ଦେବ ମୁକତି ଦାନ ।

( ୧୧ )

ଟଳନ୍ତି ଧରା ଅଚଳ          ଟେକି ବାହୁ ଅଦମଳ
ଠାଣି ଶାନ୍ତ ପଦେ ରଖ ଦୟାସାଗର,

ଝୋପେ ଦେଇ ସ୍ନେହଭାବ ଝୋପଭରୁ ଦଅ ଚାହିଁ,
ଝାଣ ହବାର ଅଇଷ କାଶୀ ଈଶ୍ୱର ;
ଝଙ୍କଧର ଅମର ବର
ଝାଣିରଖ ପଦତଳେ ତ୍ରିଶୂଳ କର ।

( ୧୨ )

ଠାବ ବାନ୍ଧୁତଳେ ଦେଇ ଠିକେ ରଖ ଭବଗ୍ରାହୀ
ଜନ୍ମେ ଜନ୍ମେ କର ପଦତଳର ଦାସ,
ଠେଲ ନ ମାର ଅତଳେ କଲ ଅଶୀବ୍ରଷ ଜାଳେ
ଭସାଇ ନ ମାର ତାର ପଦ ସାରସ;
ଠାକୁ ଜୟଦେବ କହଇ
ଠଣ ପଙ୍କଜ ଚରଣେ ସାରଙ୍ଗ ଥୋଇ ।

---

ରାଗ—ବଗଡ଼

( ୧୩ )

ଡାକ ମୋ ଅରତ ଘେନ ଡାକୁଛି ପଡ଼ି ଚରଣ
ଡରେ ଥରହର କଳେବର
ଡୋଳେ ଗୃହିଁ ଛେଦ ଛନ୍ଦ ଡୋଷ ସେନେହରେ ବାନ୍ଧ
ଡେଉ ଶୁଭ ବାଟେ ଦୟାକର ହେ
ଡମ୍ବୁଧର ।
ଡୁବିଲି ଭବ-ଜଳେ ଉଦ୍ଧର,
ଡାକିନୀ ମାୟା ମୁଖରୁ ତାର ହେ ।

( ୧୪ )

ଢାଳ ଶୀତଳ ଶୀକର ଗାଙ୍ଗେୟ ନିର୍ଝର ନୀର
ଢଳ ଢଳ ହଉ ମୋ ଅସ୍ଥିର
ଢାଳ ଘିର ଚନ୍ଦ୍ର ଶ୍ରୁଇ ଏଛିକ ମାଗଇ ସାଇଁ
ଢାଙ୍କି ରଖ ଶ୍ରୀପଦେ ତୋହର ହେ

ଚୋକାବଣ ।
ଢାଳ ପୁଣି କରୁଣା ପୀୟୂଷ
ଢାଳେ ମୋହ ପ୍ରଗ୍ଧ ମାନସ ହେ ।

( ୧୫ )

ଅନନ୍ତ ମୂରତି ସାଇଁ    ଅଭୟ ଚରଣ ଦୁଇ
ଅନାଥ ଶିରେ ଦିଅ ଲଗାଇ
ଅବନୀର ଭବ ହର    ଅନ୍ତର୍ଯ୍ୟାମୀ ନିରାକାର
ଅରକ୍ଷ ତାରଣ ସ୍ତବଗ୍ରାହୀ ହେ
ଅମ୍ବାକାନ୍ତ ।
ଅଷ୍ଟାକାର କଇଲାସ ନାଥ
ଅରକ୍ଷ ଜନ ହର ଆରତ ହେ ।

( ୧୬ )

ତାମରସ ପଦେ ସ୍ଥାନ    ତାର ଦେଇ ନିରଞ୍ଜନ
ତମ ହର ଶରଣ ସୋଦର
ତ୍ରିତାପ ବିନାଶକାରୀ    ତେଣୁ ମାଗେଁ ମୁକ୍ତିବାର
ତରଣୀ ତ୍ରିବର୍ଗ ଜଳଧିର ହେ ।
ତ୍ରିଲୋଚନ ।
ତାର ଦେଇ ଅଭୟ ଚରଣ
ନମୋ ମନମଥ ମର୍ଦ୍ଦନ ହେ ।

( ୧୭ )

ଥରେ ରଖ ପଦତଳେ    ଥାଉ ଯଶ ଭବତଳେ
ଥାନ ଧରୁ କରୁଛି ଜଣାଣ
ଥିଲେ ଦୟା କାଶୀପତି    ଥରେ ଲଗାଅ ସୁମତି
ଥରେ ହେଲେ ଦିଅ ଦରଶନ ହେ
ସ୍ଥିରମତି ।
ଥରୁଛି ହୃଦ ଦିଅ ଶକତି
ଥୟ ରହୁନାହିଁ ଛଡ଼ବୃତ୍ତି ହେ ।

( ୧୮ )

ଦରିଦ୍ର ଜୀବନ ଧନ ଦେବ ପତିତପାବନ
ଦିଅ ପଦ ଥିରେ ଏ କାମନା
ଦେଓଗାଁ ଧର୍ମମଣ୍ଡନ ଦୀନ ଆରତ ନାଶନ
ଦିଅ ଦେଖା ନ କର ଛଳନା ହେ
ଦିଗବାସ ।
ଦରହର ଚରଣ ସାରସ
ଦିବ୍ୟ ନେତ୍ରେ ଅନାଥ ମହେଶ ହେ ।

( ୧୯ )

ଧରୁ ଶ୍ରୀଚରଣ ଟେବନ ଧାତା ଦେବ ଶୂଳପାଣି
ଧର ତୋଳି ମାଗେଁ ପଦେ ପଡ଼ି
ଧବ ଚଉଦ ଭୁବନ ଧାମ ଅନନ୍ତ ବନ୍ଦନ
ଧୀରେ ରଖ ପଦତଳେ ମାଡ଼ି ହେ
ଧବଳେଶ ।
ଧେନୁ-ପତି-ଧ୍ୱଜ ଜଗଦୀଶ
ଧରଣୀ ଭାର ହର ତାମସ ।

( ୨୦ )

ନାଥ ତୁହି କାଳ କାଳ ଧବଳ ଶଶିମଉଳି
ନାହିଁ ତୋହର ବିନା ମୁକତି
ନାହିଁ ଗତି ବିନା ତୋର ନିବାର ବିପଦ ଘୋର
ନ ରଖିଲେ ନିନ୍ଦା ବସୁମତୀ ହେ
ନିରଞ୍ଜନ ।
ନବ ପଞ୍ଚ ଭୁବନ ତାରଣ
ନିରକ୍ଷ ଥିରେ ଦିଅ ଚରଣ ।

( ୨୧ )

ପିଅଅ ପଦ ପୀୟୂଷ ପଡ଼ୁଛୁ ପଦେ ମହେଶ
ପାରକର ଭବ ଜଳଧିରୁ

ପିଣ୍ଡ ପରାଣ ଈଶ୍ୱର ପିନାକ ଡମ୍ବରୁଧର
ପାଦପଦ୍ମେ ରଖ କଳ୍ପତରୁ ହେ
ପାବଂଶଣ ।
ପାଉକର ଦେଇଣ ଆଶୀଷ
ପଥ ଦେଖାଅ ମୁକ୍ତି ଦାସ ହେ ।

( ୨୨ )

ଫଣ ଅନନ୍ତ ନିବାର ଶରଣ ଗଲି ପଯ୍ୟନ୍ତ
ଅଶାନ୍ତି ମର୍ଦ୍ଦନ ବିଶ୍ୱପତି
ଫିଟାଅ ବିପଦ ଜ୍ୱର ଅବହେଳା କରନା ହର
ଫନ୍ଦା ଭୂତେ ମୁଁ ହେଅ ସଦଗତି ହେ
ଫଣିଧର ।
ଫାନ୍ଦେ ପଡ଼ି ଥରେ କଳେବର
ଫେଡ଼ି ଦିଅ ଲଗାଇ ଖିକର ହେ ।

( ୨୩ )

ବାଣଦୁର୍ଗ ବ୍ରାହ୍ମୀତଟରେ ବିରାଜ ଶାନ୍ତ ମନ୍ଦିରେ
ବିଭୂତି ଭୂଷଣ ବଜ୍ରସେବକା
ବାରେ ହୃଦୟେ ଅନନ୍ତେ ବିହର ଭକତ ହୃଦେ
ବାରତା ବୁଝି ହର ଯାତନା ହେ
ବାଣେଶ୍ୱର ।
ବଳବନ୍ତ ଗୃହ ଦଣ୍ଡପୁର
ବାସ ଦିଅ ଚରଣ ତଳର ହେ ।

( ୨୪ )

ଭୂଷିତା ମହାକାଳୀ ମହାକାଳ ସଙ୍ଗଶାଳୀ
ଭବାନୀ ଶଙ୍କର ତୋଳି ଧର
ଭୟେ ଥରେ କଳେବର ଭକତି ଧେନ ହୃଦର
ଭଜେ ଜୟଦେବ ଯୋଡ଼ି କର ହେ

ଭୋଳାନାଥ ।
ଭୁବନରୁ ଦେବୀ ଚଣ୍ଡୀକାନ୍ତ
ଇଚ୍ଛା ଚରଣାବ୍ଜ ପଦାମୃତ ହେ ।

---

ରାଗ—କାମୋଦୀ

( ୧୫ )

ମନ୍ଦ ଦଇତ ବଳ ନିବାରି ସନ୍ଥ ପାଳ
ମହୀମଣ୍ଡଳେ ରଖ ଯଶ ।
ମାନ ଯାଉଛି ସବୁ ବାଣ୍ଡ ଦିଏ ବଦାରୁ
ନିନ୍ଦା ତୋ ପାତାଳ ଆକାଶ ହେ ।
ମହେଶ୍ୱର
ମାୟା ତୋ ଅଟେ ଅଗୋଚର
ମଳୟ ତାଳ ଦେବ ହର
ମାଗଇଁ ପଦ ନୀର ମୋର ଦୁଃଖ ନିବାରି
ମାୟାବୀ ନିଶାଚର ଚୂର ହେ ।

( ୧୬ )

ଯଦୁକୁଳ ସୁମେରୁ ନିଜ ବଂଶ ଉଦ୍ଧରୁ
ଅନ୍ତେ ଚଳିଲେ ନିଜ ପୁରୀ ।
ଯୁଗ ଅନାଥ ନିତି ନିବାର ଯୋଗୀପତି
ଯାତନା ଦିଅ ମୋ ନିବାରି ହେ ।
ଯୋଗୀଶ୍ୱର
ଯୁଗଳ ପଦ ଦିଅ ଶିର
ଯୋଡ଼ଇଁ କିରେ ବେନିକର
ଯାହା କର ଗୋସାଇଁ ମୋର ଆଯତ୍ତ ନାହିଁ
ଯଉଗ ଲାଗିଛି ରଖ ସାର ହେ ।

( ୧୭ )

ରଖି ତୋ ପଦେ ମତି ଚିନ୍ତୁ ଦିବସ ରାତି
ସ୍ୱର୍ଗ । ମୁକତି ନ ପାଇଲି ।
ଏ ପଦେ ଦେବେଶ ଡମ୍ବରୁ କଟି ବୃନ୍ଦ
ବାହନ ନାଥ ହୋଇଲି ହେ ।
ରମାକାନ୍ତ
ସ୍ୱାହା ନ ଦହେ ଦଣ୍ଡ ଦଣ୍ଡ
ରକ୍ଷାପତି ଜଗତ ଈଶ ।
ରୁଷି ନ ବସ ହର ରଖ ପଦ ଭିକାରି
ରହୁ କିଙ୍କରି ଧରି ସାଥ ହେ ।

( ୧୮ )

ଲକ୍ଷେ ରମ୍ଭା ଗୟୃଣ ଦୁନ୍ଦୁଭି ଘେନ ଈଶ
କାମନା ଦୂରିଥ ମୋହର ।
ଲପନ ଜଳେ ଧରି ଦେବ ମୁକ୍ତି ପସରି
ହରିବ କେ ବିପଦ ମୋର ହେ ।
ଲିଙ୍ଗରାଜ ।
ଲତା ହୃଦ ବନେ ବିରାଜ
ଲିତାଏ ବାରତା ମୋ ବୁଝ ।
ଲୋତକଧାରି ନୀର ଭିଜନ୍ତିଲି ବକ୍ଷ ଉର
ଲଗାଇ ସ୍ନେହ ବାସ ଟେକ ହେ ।

( ୧୯ )

ବିଜୟୁ ମହାବାହୁ ବିଶ୍ୱ ଜଳଧି ନଉ
ବାହୁ ଗୁଇ ରଣ ଅଟଳ ।
ବଢ଼ିଗଲି ଅନୀତି ବିଜୟୁ କର ସ୍ଥିତି
ବଟଳ ବିଧ୍ୱଂସ ଅରିକୁଳ ହେ ।

ବିଶ୍ୱନାଥ ।
ବିଶ୍ୱ ମାତ ଭବାନୀ କାନ୍ତ
ବିଶ୍ୱ ଅନାଥ ଜନ ତାତ ।
ବିଷଦନ୍ତ ଭୂଷଣ ବିଶ୍ୱ-ହୃଦ-ନନ୍ଦନ
ବିସ କୁସୁମଧାଣ୍ୱ କାନ୍ତ ହେ ।

( ୩୦ )

ଟିର ପଦରେ ଥୋଇ ଶରଣ ଗଲି ସାଇଁ
ଶୁଣ ମୋ ବିପଦ ବାରତା ।
ଶରଣ ଜନେ ତାର ହର ବିପଦ ଭାର
ସଦୟେ ଦିଅ ହେତୁ ଚେତା ହେ ।
ଶୀଢକଣ୍ଠ ।
ଶାରଙ୍ଗ ିର ଛେଦ କୃତ
ଶରଣ ଦିଅ ମୁକ୍ତି ବାଟ ।
ଶାରଦା ଦେବୀ ବର ଶୂଳରେ ଛେଦ ଶିର
ଶିକ୍ଳନ ନିବାର ନିଘାଟ ହେ ।

( ୩୧ )

ଷଡ଼ ଅରିରୁ ରିପୁ ଉଦ୍ଧର ଭବ ତାପୁ
ଦୀନବନ୍ଧୁ ଦିଅ ଅନାଇ ।
ଷଡାନନ ବାହନ ଚନ୍ଦ୍ରିକା ସୁଶୋଭନ
ଚନ୍ଦ୍ରଶେଖର କର ତ୍ରାହି ହେ ।
ଷଷ୍ଠୀସାଇଁ
ଷଡ଼ ଅଠ ଜଗତ ସାଇଁ,
ଷଷ୍ଟାଙ୍ଗେ ଚରଣେ ନମଇଁ ।
ଷଣ୍ଢ଼ ଆସନେ ବସି ଆସି ମାନସ ତୋଷି
ବିନୟ ବୁଝି ଦୟା ବହ ହେ ।

( ୩୨ )

ସର୍ବ ଜଗତ ତାତ    ଅମର ସାରନାଥ
ସରୋଜ ପଦେ ଦଅ ସ୍ଥାନ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ    ଦେବ ଋଷି ସକଳ
ବନ୍ଦନ୍ତି ତୋହର ଚରଣ ହେ ।
ସିଦ୍ଧେଶ୍ୱର ।
ସଂସାର ହେତେ ତୋ ବହାର
ସର୍ବାଣୀକାନ୍ତ ଗଙ୍ଗାଧର ।
ସକଳ ଜଗବନ୍ଧୁ    ନତ୍ତ୍ୱ ଅନନ୍ତ ସିନ୍ଧୁ
ସନ୍ଥ ପାଳ ଦୁଷ୍ଟ ନବାର ହେ ।

( ୩୩ )

ହର ରଖ ଉଦ୍ଧର    ହର ଅର ନବାର
ହସି ପଦରେ ଦଅ ସ୍ଥାନ ।
ହବକ୍ଷେ ଦଅ ଚେତା    ହେରମ୍ବ ଦେବ ପିତା
ହୃତ ତୋ ବନା ନାହିଁ ଆନ ହେ ।
ହୃଷୀକେଶ ।
ହର ଶରଣ ଦୁଃଖ ଦାସ
ହେଲେ ନବାର କାଳପାଶ ।
ହର ତୋ ବସୁମତୀ    ହତ କରେ ଅବାଞ୍ଛ
ହର ଦୁଃଖ ଦେଇ ପୀଯୂଷ ହେ ।

( ୩୪ )

କ୍ଷୀଣକଟି ବାହନ—    ପଞ୍ଚ ଛନ ଲୋଚନ
ଅରତହାଣ ଭବଗ୍ରାହୀ ।
କ୍ଷୀଣ ହେଲଣି ତନୁ    ନ ପାଇ ପଦରେଣୁ
କାମନା ପୂରଥ ଗୋସାଇଁ ହେ ।

କ୍ଷିତୀଶ୍ୱରବ ।
କ୍ଷମାଢ଼୍ୟ ଚନ୍ଦ୍ରଶେଖର ।
କ୍ଷିତି ନାଶଗଲ୍ଲ ଜଦ୍ଧର ।

କ୍ଷମଦ୍ଧର ଯାଚନା ଜୟଦେବ କାମନା

ପୂର୍ଣ୍ଣ ଭବାନୀଶଙ୍କର ଦେ ।

ଶ୍ରୀ ଶୁଭମସ୍ତୁ, ସମ୍ପୂର୍ଣ୍ଣମ୍



ମୁଦ୍ରାକର :—ମହମ୍ମଦ୍ ଅବ୍ଦୁଲ ହାଦ, ଲକ୍ଷ୍ମୀନାରାୟଣ ପ୍ରେସ,
କଟକ, ୧୯୫୧